# ଦାନବୀର ହରିଶ୍ଚନ୍ଦ୍ର



ପ୍ରାପ୍ତିସ୍ଥାନ

**ବୀଣାପାଣି ପୁସ୍ତକ ଭଣ୍ଡାର**

ଜୟଶ୍ରୀ ସିନେମାହଲ କମ୍ପାଉଣ୍ଡ

ବାଦାମବାଡ଼ି, କଟକ-୯.

ଫୋନ୍ - ୬୫୩୧୩୧୬

ମୂଲ୍ୟ– ଦଶ ଟଙ୍କା ମାତ୍ର

# ଦାନବୀର ହରିଶ୍ଚନ୍ଦ୍ର

## (ସୀତାଚୋରୀ - ବୃତ୍ତେ)

ହରିଶ୍ଚନ୍ଦ୍ର – କିଏ ତୁ ଏତେ ରାତ୍ରିରେ କାନ୍ଦୁ ଅଛୁ ନାରୀ ।
ଦେବୀ କି ମାନବୀ ଅଟୁ କହ ସତ୍ୟ କରି
ନାରୀହୀରା ଗୋ, କି କାରଣେ କାନ୍ଦୁ ଅଛୁ ପରା ଗୋ ॥୧॥
ଶବ୍ୟାରାଣୀ – ମନରେ ଭୟ ନକର ହେ ଶ୍ମଶାନ ପାଳ
ମୁଁ ମାନବୀ ଅଭାଗୀନୀ ପୋଡ଼ା ମୋ କପାଳ
ଗଲା ସୁଖ ହେ, ବିଧାତା ହେଇଛି କର୍ମେ ଦୁଃଖ ହେ ॥୨॥
ହରି– ଝିପି ଝିପି ବର୍ଷା ସଙ୍ଗେ ଚମକେ ବିଜୁଳି
ଶୃଗାଳ ଶବ୍ଦେ ଶ୍ମଶାନ ପଡୁଛି ଉଛୁଳି
ନାହିଁ ଭୟ ଗୋ, କି କାରଣେ ଆସିଅଛୁ କହ ଗୋ ॥୩॥
ଶବ୍ୟା – ଜୀବନର ଆଶାସବୁ ହୃଦୁ ତୁଟାଇଛି
ତେଣୁ ଏ ଘୋର ଅନ୍ଧାରେ ଏକାକୀ ବୁଲୁଛି
ମୃତ୍ୟୁ ନାହିଁ ହେ, ଦିନରାତି କନ୍ଦାଉଛି ବିହି ହେ ॥୪॥
ହରି – ମୁଁ ତ ଶ୍ମଶାନ ରକ୍ଷକ ଚଣ୍ଡାଳ ଚାକର
ମୋ ପାଶେ କାନ୍ଦିଲେ କି ତୋ ଦୁଃଖ ହେବ ଦୂର
ଯାଅ ଫେରି ଗୋ, ତୋ ଦୁଃଖରୁ ମୋର ଦୁଃଖ ବଳି ଗୋ ॥୫॥
ଶବ୍ୟା – ହେ ଶ୍ମଶାନବୀର ଶୁଣ ମୋର ନିବେଦନ
କୋଳେ ଘେନି ଆସିଛି ମୋ ଏକଇ ନନ୍ଦନ
ଦିଅ ପୋଡ଼ି ହେ, କହୁଛି ତୁମ୍ଭଙ୍କୁ କର ଯୋଡ଼ି ହେ ॥୬॥
ହରି – କଉଡ଼ି ନଦେଲେ ପୋଡ଼ି ନ ଦେବି ନବୀନା
ମୁଁ କିସ କରିବି ମୋର ମାଲିକର ମନା
ଦେଲେ ପୋଡ଼ି ଗୋ, ଗଲାକ୍ଷଣି ମାଗିବ କଉଡ଼ି ଗୋ ॥୭॥

ଶବ୍ୟା– କାହୁଁ ପାଇବି କଉଡ଼ି ମୋ କରମ ପୋଡ଼ା
ବ୍ରାହ୍ମଣ ଘରେ ଚାକିରୀ କରି ଦିନ ଗଲା
ଗାଳି ଖାଇ ହେ, କର୍ମକୁ ଆଦରି ଦିନ ଯାଉ ହେ ॥୮॥
ହରି– ତୁ ତ ରାଜରାଣୀ ପରି ଦେଖା ଯାଉଅଛୁ
ଚାକରାଣୀ କହି ମୋତେ ମିଛରେ ଭଣ୍ଡୁଛୁ
ତୁ ଚତୁରୀ ଗୋ ମିଥ୍ୟା ବାଣୀ ଭାଷୁଛୁ କିପରି ଗୋ ।୯।
ଶବ୍ୟା– ଯାହା କହିଲ ହେ ବୀର ସତ୍ୟ ତୁମ୍ଭ ବାଣୀ
ରାଜରାଣୀ ହୋଇ ହେଲି ପଥ ଭିକାରୁଣୀ
ରାଜ୍ୟ ଛାଡ଼ି ହେ, ଆସିଲି ମୁଁ ପତି ସଙ୍ଗେ ପଡ଼ି ହେ ॥୧୦॥
ହରି – କହ କହ ସତୀନାରୀ କିଏ ତୋର ପତି
କିମ୍ପାଇଁ ରାଜ୍ୟ ହରାଇ ଭୋଗୁଛୁ ବିପତ୍ତି
ଏ ବାଳକ ଗୋ, କି କାରଣେ ହେଲା ପରଲୋକ ଗୋ ॥୧୧॥
ଶବ୍ୟା– ଅଯୋଧ୍ୟା ନୃପତି ହରିଶ୍ଚନ୍ଦ୍ର ମୋର ପତି
ମୋର ନାମ ଶବ୍ୟା ଜାଣ ସତ୍ୟ ଏ ଭାରତୀ
ପୁତ୍ର ମୋର ହେ, ରୋହିତାଶ୍ୱ ନାମ ବୀରବର ହେ ॥୧୨॥
ବିଶ୍ୱାମିତ୍ରେ ରାଜ୍ୟଧନ ପତି ଦାନ କରି
ମୋତେ ସଙ୍ଗରେ ଘେନିଣ ଭିକ୍ଷା ଝୁଲିଧରି
କର୍ମକହି ହେ, ଭିକ୍ଷା ମାଗିଲେ ନଦ୍ୟନ୍ତେ କେହି ହେ ॥୧୩॥
ବେଳୁ ବେଳ ଅନ୍ନବିନା ବିକଳ ହୋଇଲେ
ବ୍ରାହ୍ମଣ ଘରେ ପୋଇଲି ପଣେ ସେ ବିକିଲେ
ଛାଡ଼ି ଦେଇ ହେ, କେଣେ ଗଲେ କାନ୍ତ ଜଣାନାହିଁ ହେ ॥୧୪॥
କରମ ଆଦରି ପୁନ୍ତ ରୋହିତକୁ ନେଇ
ଦୁଃଖ କଷ୍ଟେ ରହିଥିଲି ମାଡ଼ ଗାଳି ଖାଇ
ଧନମାଳି ହେ, ଗଲେ ଖୁର ଦେଇଗଲା ଚାଳି ହେ ॥୧୫॥

ହରି —.କି କାରଣେ ଗଳେ ଖୁର ଦେଲା ଖୋ କୁମର
ସତ୍ୟ ଭାଷ ରାମାମଣି କପଟ ନ କର
ତୋ କାହାଣୀ ଗୋ, ଶୁଣି ମୋ ହୃଦୟ ହୁଏ ହାଣି ଗୋ ॥୧୬॥
ଶବ୍ୟା— ସଖା ସଙ୍ଗେ ଯାଇଥିଲା ବନେ ଫୁଲ ତୋଳି
ସର୍ପାଘାତେ ମରିଲା ମୋ ହୃଦୟ ସଙ୍ଖାଳି
ଦୁଃଖ ଦୁଃଖ ହେ, ଘଟାଇଛି ବିହି ଅବିବେକ ହେ ॥୧୭॥
ରାଜ୍ୟ ଭୋଗ ପତି ସୁଖ ତେଜ୍ୟା କରିଥିଲି
ପୁତ୍ର ମୁଖ ଚାହିଁ ମୁହଁ ଦିନ କାଟୁଥିଲି
ଗଲା ଚାଲି ହେ, ଦିନ ନ ସରେ ମୋ ଭାଳି ଭାଳି ହେ ।୧୮।
ତେଣୁ ପୁତ୍ର ଶବ ନେଇ ଆସିଛି ଏଠାକୁ
ସଂସ୍କାର କରିବା ପାଇଁ କହୁଛି ତୁମ୍ଭଙ୍କୁ
ବୀରବର ହେ, ଅଭାଗିନୀଠାରେ ଦୟାକର ହେ ॥୧୯॥
ହରି — ଆହା ପ୍ରାଣେଶ୍ୱରୀ ତେ ତେ ଚିହ୍ନି ନପାରିଲି
ବୃଥା ଏତେ ଯୁକ୍ତିତର୍କ ତୋ ସଙ୍ଗେ ଖେଳିଲି
ପ୍ରିୟା ମୋରଗୋ, ଛାତିଫାଟେ ଦେଖିଦଶା ତୋର ଗୋ ॥୨୦॥
ଆରେ ବାପ ରୋହିତାଶ୍ୱ ମୋ ହୃଦ ଚନ୍ଦନ
ତୋର ମୃତ୍ୟୁ ଦେଖି ଯାହା ଧରିଛି ଜୀବନ
ଗଲୁ କାହିଁରେ, ଆଉ ଏ ପ୍ରାଣ ରଖିବି ନାହିଁ ରେ ॥୨୧॥
ଚାଲ ପ୍ରିୟେ ଦୁଇଜଣ ଚିତା ସଜାଡ଼ିବା
ଅଗ୍ନି ମଧ୍ୟେ ପୁତ୍ର ସଙ୍ଗେ ପଡ଼ି ଝାସ ଦେବା
ପ୍ରିୟ ସହି ଗୋ, ଡେ଼ରି କରିବାକୁ ବେଳ ନାହିଁ ଗୋ ॥୨୨॥
ଏତେ କହି ହରିଶ୍ଚନ୍ଦ୍ର ଶବ୍ୟା ସଙ୍ଗେ ଧରି
ଚିତା ସଜାଡ଼ିବା କାଳେ ବିଶ୍ୱାମିତ୍ର ମିଳି
କଲେ ବନ୍ଦ ହେ, ଲୋକନାଥ ଧ୍ୟାୟି ହରିପାଦ ହେ ॥୨୩॥

ଦ୍ୱିତୀୟ ଛାନ୍ଦ – (କିକଲୁ କଲୁ)

ହେଉଛ ଅସ୍ଥିର କିରେ ଦାନବୀର, ମାନ ଗୀର
ତୁମ ଯଶ କୀର୍ତ୍ତି ଘୋଷେ ଏ ଧରିତ୍ରୀ
କଥା ରଖିଲ କାଳ କାଳରେ ।। ପଦ ।।
ଏବେ ତେଜ ମନୁ ଚିନ୍ତା ହେ ସୂର୍ଯ୍ୟବଂଶ ସବିତା
ଅନଳେ ଝାସ ନା ଶରୀରରେ ।।୧।।
ସସାଗରା ଅଧିପତୀ ହୋଇ ଛାଡ଼ିଲୁ ରାଜୁତି
ଭିକ୍ଷା ଝୁଲି ଧରି କାନ୍ଧରେ ।।୨।।
ଚଣ୍ଡାଳ ଘରେ ଚାକର ହେଲୁ ଆରେ ନୃପବର
ଧନ୍ୟ ଶବ୍ୟାରାଣୀ ତୋର ରେ ।।୩।।
ବ୍ରାହ୍ମଣ ଘରର ଦାସୀ ହୋଇଥାଏ ମହାଖୁସି
ନ ଥାଏ ମନ କଷ୍ଟ ତାର ରେ ।।୪।।
ଏତେ ଏତେ କଷ୍ଟ ସହି ତଥାପି ଧର୍ମକୁ ତୁହି
ହୃଦେ କହିଲୁ ଜପାମାଳି ରେ ।।୫।।
ଅଯୋଧ୍ୟା କୁଳ ଚନ୍ଦ୍ରମା ରୋହିତକୁ ସର୍ପସିନା
ଦଂଶିଣ ପୁଷ୍ପ ଉଦ୍ୟାନରେ ।।୬।।
ଆଜି ସେହି ଧର୍ମ ବଳେ ଆସିଛି ତୁମ ଛାମୁରେ
ପଠାଇଛନ୍ତି ସୁନାସୀରରେ ।।୭।।
ମୁଁ ବିଶ୍ୱାମିନ୍ତ୍ର ମହର୍ଷି ଚିତ୍ତ ବିତୁଥିଲି ଆସି
କହିଛି କେତେ କଟୁଗୀର ରେ ।।୮।।
ଧର୍ମର ପରୀକ୍ଷା ପୂର୍ଣ୍ଣ ହେଲା ଆଜି ନୃପରାଣ
ଦିଅ ତୋ- ସୁତ କୋଳେ ମୋର ରେ ।।୯।।
ପଢ଼ ମୃତ୍ୟୁ ସଞ୍ଜୀବନ ଦେବି ପୁତ୍ର ପ୍ରାଣଦାନ
ଦେଖିବେ ଲୋକ ତିନିପୁରରେ ।।୧୦।।

ଅନ୍ତେ ବୈକୁଣ୍ଠରେ ଦାନ ପାଇବ ହେ ତିନିଜଣ
ଭାଗ୍ୟ ରବି ଉଇଁଲା ତୋହର ରେ ॥୧୧॥
ବିଶ୍ୱାମିତ୍ରଙ୍କ ଭାରତୀ ଶୁଣି ଶବ୍ୟା ପ୍ରାଣପତି
ଭାଷନ୍ତି ବଚନ ମଧୂର ରେ ॥୧୨॥

## ତୃତୀୟ ଛନ୍ଦ– (ବୟସ କେତେ)

ହରିଶ୍ଚନ୍ଦ୍ର - ନକର ବାରଣ ଆହେ ତପୋଧନ
ଅନଳେ ଦେବି ଜୀବନ
ବିଶ୍ୱାମିତ୍ର - ଅକାରଣେ କିମ୍ପା ପ୍ରାଣ ହରାଇବୁ
କହି ଅଯୋଧ୍ୟା ରାଜନ ॥୧॥
ହ– କେଉଁ ସୁଖ ପାଇଁ ରଖିବି ଏ ପ୍ରାଣ
ସାରିଛି ସୁଖ ସଂସାରେ
ବି– ତୋର ଦୁଃଖ କଷ୍ଟ ଆଜ୍ଝୁ ହେଲା ନଷ୍ଟ
ସୁଖ ଲଭିବୁ ସଂସାରେ ॥୨॥
ହ– ଏକଇର ବଳା ମୋ ନେତ୍ର ପିତୁଳା
ଗଲା କେଣେ ମୋତେ ଛାଡ଼ି
ବି– ଏହିକ୍ଷଣି ଦେଖ ପ୍ରାଣଦାନ ଦେବି
ମୃତ୍ୟୁ ସଞ୍ଜୀବନୀ ପଢ଼ି ॥୩॥
ହ– ସତେକି ଶୁଖିଲା ସମୁଦ୍ରରେ ମୋର
ଆଶା ତରଣୀ ଭାସିବ
ବି– ତୋର ଧର୍ମ ବଳେ ତୋର ପୁଅ ଉଠି
ଦେଖ ତୋ କୋଳେ ବସିବ ॥୪॥
ହ– ହୋଇ ରାଜରାଣୀ ଦାଣ୍ଡ ଭିକାରୁଣୀ
ପରି ଦାଣ୍ଡରେ ବୁଲିଲି
ବି– ହୋଇ ନୃପବର ଚାଣ୍ଡାଳ ଚାକର
ଆସି ଶ୍ମଶାନ ଜଗିଲି ॥୫॥

ହ– ମୋ କୁଳ ଚନ୍ଦମା ଫୁଲ ତୋଳି ଯାନ୍ତେ
ତାହାକୁ ସର୍ପ ଦଂଶିଲା
ବି– କରମ ଲିଖନ କେ କରିବ ଆନ
ଆସ ମୋ ଘନ କୁନ୍ତଳା ।।୬।।
ହ– କାନ୍ଦନା କାନ୍ଦନା ନିନ୍ଦନା ନିନ୍ଦନା
ଧର୍ମକୁ ଧାର୍ମିକ ବୀର
ବି– ପ୍ରାଣଗଲେ ସୁଦ୍ଧା ମୋର ଚିନ୍ତା ନାହିଁ
ଧର୍ମେ ସଦା ମତି ମୋର ।।୭।।
ବି– ସତ୍ୟ ଯେତେ ଧର୍ମ ସଂସାରେ ରହିବ
ଦେଖ ଜୀଇବ ତୋ ସୁତ
ଚକ୍ଷୁ ବୁଜି ସର୍ବେ ହରିବୋଲ ଦେଲେ
ଉଠି ବସିଲା ରୋହିତ ।।୮।।
ଏହି ସମୟରେ ସ୍ୱର୍ଗରୁ ଆସିଣ
ମିଳିଲା ପୁଷ୍ପକ ଯାନ
ପତ୍ନୀ ପୁତ୍ର ରାଜା ବିଶ୍ୱାମିତ୍ର ସହ
ଗଲେ ଅମର ଭୁବନ ।।୯।।
ପର୍ବ ଯା ଶୁଣିଲା ତାହା ମୁଁ ଲେଖିଲି
ନ ଧରିବ ମୋର ଦୋଷ
ଏହାପରେ ବଳି ବାମନ ଉଦ୍ଧାର
ଲେଖିବି ଆହେ ବିଦୂଷ ।।୧୦।।
ନାମ ଲୋକନାଥ ଆଜନ୍ମ ମୂର୍ଖତ
ଦେଖିନାହିଁ ମୁଁ ଚାହାଳୀ
ଦକ୍ଷିଣ ଚଣ୍ଡୀକି ହୃଦେ ସଦା ଧ୍ୟାୟି
ପଦ ଲେଖେ ଭାଳି ଭାଳି ।।୧୧।।

